# ମହାଭାରତରୁ ଦୁଇଟି କାହାଣୀ



● ଲେଖକ : ଜଗମୋହନ ରାଠୋର
● ଚିତ୍ରଶିଳ୍ପୀ : ହରିହର ପାତ୍ର

ନବସାକ୍ଷର ସାହିତ୍ୟମାଳା

# ମହାଭାରତରୁ ଦୁଇଟି କାହାଣୀ

ଜଗମୋହନ ରାଠୋର
ଚିତ୍ରଶିଳ୍ପୀ
ହରିହର ପାତ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଏହି ପୁସ୍ତକଟି ପରିବେଶ ସହାୟକ ପୁନଃ-ଉତ୍ପାଦିତ କାଗଜରେ ମୁଦ୍ରିତ ।

ଏହି ପୁସ୍ତକଟିର ପ୍ରସ୍ତୁତିରେ ଓଡ଼ିଶା ସରକାରଙ୍କର ଶିକ୍ଷା ବିଭାଗ ଯଥାର୍ଥ ସାହାଯ୍ୟ ଓ ସହଯୋଗ କରିଥିବାରୁ ପ୍ରକାଶକ ସେମାନଙ୍କୁ କୃତଜ୍ଞତା ଜଣାଉଛନ୍ତି ।

ISBN 81-237-1861-6

---

ପ୍ରଥମ ସଂସ୍କରଣ 1982 (ଶକାବ୍ଦ 1903)
ତୃତୀୟ ସଂସ୍କରଣ 1996 (ଶକାବ୍ଦ 1918)

MAHABHARTARU DUITI KAHANI (*Oriya*)
ଟ. 4.50
ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆଦିଲ୍ଲୀ - 110 016 କର୍ତ୍ତୃକ ପ୍ରକାଶିତ ।

---

# ବକାସୁର ବଧ

ବହୁଦିନ ତଳର କଥା । ଆଜି ଯେଉଁଠି ଦିଲ୍ଲୀ ସହର ଅଛି ସେତେବେଳେ ସେଠାରେ ହସ୍ତିନାପୁର ବୋଲି ଗୋଟିଏ ସହର ଥିଲା । ଏହା ଚନ୍ଦ୍ରବଂଶର ରାଜାମାନଙ୍କର ରାଜଧାନୀ ଥିଲା । ଏହି ବଂଶରେ ଧୃତରାଷ୍ଟ୍ର ଓ ପାଣ୍ଡୁ ନାମରେ ଦୁଇଭାଇ ଥିଲେ । ଧୃତରାଷ୍ଟ୍ର ବଡ଼ ହେଲେ ମଧ୍ୟ ଜନ୍ମରୁ ଅନ୍ଧ ଥିଲେ । ତେଣୁ ସାନଭାଇ ପାଣ୍ଡୁ ରାଜ୍ୟଶାସନ କରୁଥିଲେ । ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନ, ଦୁଃଶାସନ ଆଦି ଶହେ ପୁଅ ଥିଲେ । ଏମାନଙ୍କୁ କୌରବ କୁହାଯାଉଥିଲା । ପାଣ୍ଡୁଙ୍କର ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ ଏହିପରି ପାଞ୍ଚପୁଅ ଥିଲେ । ଏମାନଙ୍କୁ ପାଣ୍ଡବ କହୁଥିଲେ । ଯୁଧିଷ୍ଠିର ବୟସରେ ଦୁର୍ଯ୍ୟୋଧନ-ଠାରୁ ବଡ଼ । ଏଣୁ ପାଣ୍ଡୁ ଅକାଳରେ ମରିଯିବାରୁ ଯୁଧିଷ୍ଠିର ରାଜା ହେଲେ । ଏଥିରେ ଦୁର୍ଯ୍ୟୋଧନ ସବୁବେଳେ ପାଣ୍ଡବମାନଙ୍କୁ ହିଂସା କରୁଥିଲା । ସେ ସେମାନଙ୍କୁ ଜୀବନରେ ମାରି ଦେବାକୁ ବିଚାର କଲା ।

## ପାଣ୍ଡବମାନଙ୍କ ଅଜ୍ଞାତବାସ

ଥରେ ବାରୁଣାବନ୍ତ ବୋଲି ଗୋଟିଏ ସ୍ଥାନରେ ଶିବଯାତ୍ରା ହେଉଥିଲା । ଦୁର୍ଯ୍ୟୋଧନ ପାଣ୍ଡବ ପାଞ୍ଚଭାଇ ଓ ମା କୁନ୍ତୀଙ୍କୁ ସେହିଯାତ୍ରା ଦେଖିବାକୁ ପଠାଇଲା । ସେମାନଙ୍କ ରହିବାପାଇଁ ଆଗରୁ ଗୋଟିଏ ଜଉଘର ତିଆରି କରେଇଥିଲା । ପଞ୍ଚପାଣ୍ଡବ ଓ ତାଙ୍କ

ମାଙ୍କୁ ରାତରେ ସେହିଘରେ ନିଆଁ ଲଗାଇ ପୋଡ଼ିଦେବାକୁ ଠିକ ହୋଇଥିଲା । ବିଦୁର ଦୁର୍ଯ୍ୟୋଧନର ଏ ମନ୍ଦ ଯୋଜନାକୁ ଆଗରୁ ଜାଣି ପାରିଥିଲେ । ସେ ଜଣେ ଲୋକ ପଠାଇଲେ । ଲୋକଟି ଜଉ ଘରଠାରୁ ବହୁଦୂର ବାଟଯାଏ ଗୋଟାଏ ସୁଡ଼ଙ୍ଗ ଖୋଳି ଦେଇଥିଲା । ଯୁଧିଷ୍ଠିର ତ ଭାରି ବୁଦ୍ଧିମାନ । ଦୁର୍ଯ୍ୟୋଧନର ଏ ଯୋଜନାକୁ ସେ ସନ୍ଦେହ କଲେ । ବିଦୁର ମଧ୍ୟ ଏକଥା ତାଙ୍କୁ ଜଣାଇ ଦେଇଥିଲେ । ସୁବିଧା ଦେଖି ସେଠାରୁ ଖସିଯିବାକୁ ମଧ୍ୟ ସେ ସେମାନଙ୍କୁ ଉପଦେଶ ଦେଇଥିଲେ ।

ଦିନେ ରାତରେ ସୁବିଧା ଦେଖି ସୁଡ଼ଙ୍ଗବାଟେ ସେମାନେ ପଳାଇଗଲେ । ଯିବାପୂର୍ବରୁ ସେ ଜଉଘରେ ନିଆଁ ଲଗାଇ ଦେଲେ । ଦୈବଯୋଗକୁ ସେ ଦିନ ରାତରେ ଗୋଟିଏ ସଉରୁଣୀ ତାର ପାଞ୍ଚ ପୁଅଙ୍କ ସଙ୍ଗେ ସେହିଘର ପିଣ୍ଡାରେ ଶୋଇଥିଲା । ଜଉଘର ପୋଡ଼ି ଯିବାରୁ ଏମାନେ ସମସ୍ତେ ପୋଡ଼ିମଲେ । ସକାଳ ହେବାରୁ ଚାରି-ଆଡ଼େ ହୁରି ପଡ଼ିଲା । ସମସ୍ତେ ଭାବିଲେ ପଞ୍ଚପାଣ୍ଡବ ଓ ମା କୁନ୍ତୀ ନିଆଁରେ ପୋଡ଼ିମଲେ । ଧୃତରାଷ୍ଟ୍ର ଏ ଖବର ପାଇ ଭାରି ଦୁଃଖିତ ହେଲେ । ରାଜ୍ୟର ଲୋକମାନେ ଧୃତରାଷ୍ଟ୍ର ଓ ଦୁର୍ଯ୍ୟୋଧନଙ୍କୁ ନିନ୍ଦା କଲେ । ଧୃତରାଷ୍ଟ୍ର ଆଡ଼ମ୍ବରରେ ପାଣ୍ଡବମାନଙ୍କର ଶୁଦ୍ଧିକ୍ରିୟା ଶେଷ କଲେ ।

ଏଣେ ପାଞ୍ଚଭାଇ ମା' କୁନ୍ତୀଙ୍କ ସଙ୍ଗେ ସୁଡ଼ଙ୍ଗରୁ ବାହାରି ରାତାରାତି ଅନେକ ଦୂରକୁ ଚାଲିଗଲେ । ଚିହ୍ନା ପଡ଼ିଯିବା ଭୟରେ ସେମାନେ ବ୍ରାହ୍ମଣ ବେଶ ହେଲେ । ବ୍ରାହ୍ମଣ ବେଶରେ ସେମାନେ

ଭିକ୍ଷା ମାଗି ଦେଶ ଦେଶ ବୁଲିଲେ । ଏହିପରି ଭିକ ମାଗି ମାଗି ଦିନେ ଯାଇ ସେମାନେ ଏକଚକ୍ର ଗ୍ରାମରେ ପହଞ୍ଚିଲେ । ଗ୍ରାମଟି ଖୁବ୍ ବଡ଼ ଓ ସୁନ୍ଦର । ସେ ଗ୍ରାମରେ ବ୍ରାହ୍ମଣ, କ୍ଷତ୍ରିୟ ଆଦି ସବୁ ଜାତିର ଲୋକ ରହୁଥିଲେ । ଗାଁ ପାଖରେ ଗୋଟିଏ ନଈ ବୋହି ଯାଉଥିଲା । ଗାଁଠାରୁ ଟିକିଏ ଦୂରରେ ଗୋଟିଏ ବଡ଼ ଜଙ୍ଗଲ ଥିଲା ।

## ବ୍ରାହ୍ମଣ-ବ୍ରାହ୍ମଣୀର ଅତିଥି ସେବା

ପାଣ୍ଡବମାନେ ସେହି ଗାଁରେ ଭିକ ମାଗି ମାଗି ଜଣେ ଗରିବ ବ୍ରାହ୍ମଣ ଘରେ ପହଞ୍ଚିଲେ । ବ୍ରାହ୍ମଣର ନାମ ବେଦଶ୍ରବା । ଏମାନେ ତା ଘରେ ପହଞ୍ଚିଲା ବେଳକୁ ସେ ଘରେ ନ ଥିଲା । ସେ ଭିକ ମାଗିବାକୁ ଯାଇ ଫେରି ନ ଥିଲା । ଘରେ ବ୍ରାହ୍ମଣୀ ଏବଂ ତାର ଗୋଟିଏ ପୁଅ ଓ ଝିଅ ଥିଲେ । ସେତେବେଳକୁ ସନ୍ଧ୍ୟା ହୋଇ ଆସିଲାଣି । ବ୍ରାହ୍ମଣୀ ସେମାନଙ୍କୁ ଦେଖି ପାଖକୁ ଦୌଡ଼ି ଆସିଲା । ସେମାନଙ୍କ ଭଲମନ୍ଦ କଥା ପଚାରିଲା । ସେମାନଙ୍କ ରହିବାପାଇଁ ନିଜଘରର ଅଧେ ଛାଡ଼ିଦେଲା । ବ୍ରାହ୍ମଣୀର ବ୍ୟବହାରରେ ଖୁସିହୋଇ ପାଞ୍ଚଭାଇ ମାଙ୍କ ସଙ୍ଗେ ସେଠାରେ ରହିଲେ । ବ୍ରାହ୍ମଣ ସନ୍ଧ୍ୟାବେଳକୁ ଘରକୁ ଫେରିଲା । ବ୍ରାହ୍ମଣୀ ସବୁକଥା ତାଙ୍କୁ ଜଣାଇଲା । ବ୍ରାହ୍ମଣ ଏ କଥା ଶୁଣି ଭାରି ଖୁସି ହେଲା । କେବଳ ଯାଗାଟିଏ ଦେଇ ବ୍ରାହ୍ମଣୀ ସନ୍ତୁଷ୍ଟ ନ ଥିଲା । ବ୍ରାହ୍ମଣ ଆଣିଥିବା ଭିକରୁ ଅଧେ ନିଜଘର ପାଇଁ ରଖିଲା । ବାକି ଅଧିକ ଅତିଥିମାନଙ୍କୁ ଦେଇ ଆସିଲା । ସେମାନେ ବ୍ରାହ୍ମଣ-ବ୍ରାହ୍ମଣୀର ଅତିଥିସେବାରେ ଖୁବ୍ ଖୁସି ହେଲେ । ଅନ୍ୟ କୁଆଡ଼େ ନ ଯାଇ ସେମାନେ ସେଠାରେ କିଛିଦିନ ରହିବାକୁ ଠିକ୍ କଲେ ।

ପ୍ରତିଦିନ ସକାଳୁ ଭୀମ ଛଡ଼ା ଅନ୍ୟ ଚାରିଭାଇ ଭିକ୍ଷା କରିବାକୁ ଯାଆନ୍ତି । ଭୀମ ମା ପାଖରେ ରହେ । କାରଣ ଭୀମ ଟିକି ଭାରି ରାଗୀ । କେହି ଲୋକ ଭିକ୍ଷା ନ ଦେଲେ ବା ଅଳ୍ପଭିକ୍ଷା ଦେଲେ ସେ ରାଗିଯାଇ କିଛି ଗୋଟାଏ ଅନିଷ୍ଟ କରିପାରେ । ଏହି ଭୟରେ ତାକୁ ଭିକ ମାଗିବାପାଇଁ ସାଙ୍ଗରେ ନେଉ ନ ଥିଲେ । ପ୍ରତିଦିନ ଯାହା ଭିକମିଳେ ମା ସେତକ ରାନ୍ଧି ଦୁଇଭାଗ କରନ୍ତି । ସେଥିରୁ ଭାଗେ ଭୀମକୁ ଦିଅନ୍ତି । ଭୀମ ତ ଭାରି ପେଟୁ, ଯେତେ ଖାଇଲେ ମଧ୍ଯ ସେ ସନ୍ତୁଷ୍ଟ ହୁଏ ନାହିଁ । ବାକି ଅଧିକ ପୁଣି ଦୁଇଭାଗ କରି ଭାଗେ ଦେବ ବ୍ରାହ୍ମଣଙ୍କୁ ଦିଅନ୍ତି । ବଳକା ଖାଦ୍ୟକୁ ପାଞ୍ଚଭାଗକରି ଚାରି ଭାଇ ଓ ମା ଖାଆନ୍ତି । ସମୁଦାୟ ଖାଦ୍ୟରୁ ଅଧେ ଓ ସମସ୍ତ ପେକ ଖାଇ ମଧ୍ଯ ଭୀମର ପେଟ ପୂରେ ନାହିଁ । ଏଣୁ ଭୀମବଡ଼ ମନ କଷ୍ଟରେ ଥାଏ । ରାଗରେ ସେ କାହାସଙ୍ଗେ କଥାବର୍ତ୍ତା କରେ ନାହିଁ । ଏହିଭଳି ଦିନ ଗଡ଼ି ଚାଲିଥାଏ ।

## ବେଦଶ୍ରବା ବ୍ରାହ୍ମଣ ଘରେ ବିପଦ

ଦେହ ଅସୁସ୍ଥ ଯୋଗୁଁ ଦିନେ ବ୍ରାହ୍ମଣ ଭିକ ମାଗି ନ ଯାଇ ଘରେ ରହିଲା । ବ୍ରାହ୍ମଣୀ ପଡ଼ିଶାଘରୁ କିଛି ଚାଉଳ ଉଧାର ଆଣି କାମ ଚଳାଇ ନେଲା । ସନ୍ଧ୍ୟାବେଳକୁ ସେ ଗାଁର ଅମ୍ବିକା ଚଣ୍ଡାଳ ନାଗରା ଦେଲା ଯେ କାଲି ବେଦଶ୍ରବା ଘରେ ଠାକୁରର ପାଳି । ନାଗରା ଶବ୍ଦ ଶୁଣି ବ୍ରାହ୍ମଣୀ ଚମକି ପଡ଼ିଲା । ଅମ୍ବିକା ବେଦଶ୍ରବା ବ୍ରାହ୍ମଣକୁ କହିଲା, ପଣ୍ଡା ମହାଶୟ ! କାଲି ତୁମଘରେ ଠାକୁରର ପାଳି । ଏହାଶୁଣି ବ୍ରାହ୍ମଣୀର ଭାଲେଣି ପଡ଼ିଗଲା । ବ୍ରାହ୍ମଣ ବ୍ରାହ୍ମଣୀକୁ କହିଲା, ତୁ

ମିଛରେ କାହିଁକି ବ୍ୟସ୍ତ ହେଉଛ । ଏତେବଡ଼ ଗାଁରେ କେତେ ତ ବେଦଶ୍ରବା ନାଁରେ ବ୍ରାହ୍ମଣ ଅଛନ୍ତି । ଅନ୍ୟ କାହାର ପାଳି ପଡ଼ିଥିବ । ବ୍ରାହ୍ମଣୀ କହିଲା, ତୁମେ ହିସାବ କରି ଦେଖନ୍ତୁ; ଆମର ପାଳି ପଡ଼ୁଛି କି ? ବ୍ରାହ୍ମଣ ହିସାବ କରି ଦେଖିଲା । ସତକୁ ସତ ତାଙ୍କର ପାଳି । ଏ କଥା ଜାଣି ବ୍ରାହ୍ମଣୀ ଅଚେତ ହୋଇ ପଡ଼ିଗଲେ । ବାପା ମାଙ୍କ ଏ ଅବସ୍ଥା ଦେଖି ପିଲା ଦୁଇଟି ମଧ୍ଯ କାନ୍ଦ ବୋବାଳି ଛାଡ଼ିଲେ । ବ୍ରାହ୍ମଣ ଘରେ କାନ୍ଦାକଟା ଶୁଣି କୁନ୍ତୀ ଜଳାବାଟରେ ଚାହିଁଲେ ।

ବ୍ରାହ୍ମଣୀ କହିଲା, ବେମାର ଯୋଗୁଁ ତୁମେ ତ ଭିକମାଗି ଗଲ ନାହିଁ । ମୁଁ ଏହା ଘରୁ ତା ଘରୁ ଚାଉଳ ଉଧାର ଆଣି କାମ ଚଳାଇଲି । ଘରେ ଖୁଦକଣାଟିଏ ବି ନାହିଁ । ପୁଣି ଏତକ ବେଳକୁ ବକାସୁରର ପାଳି । ବକାସୁରପାଇଁ ଦୁଇଶଗଡ଼ ଭାତପିଠା, ଦୁଇହଳ ବଳଦ, ପୁଣି ଜଣେ ମଣିଷ ଦରକାର । ଏ ସବୁ ଜିନିଷ କେଉଁଠୁ ପାଇବା ? ଏହି ଚିନ୍ତାରେ କାନ୍ଦି କାନ୍ଦି ସେମାନେ ଭୂଇଁରେ ଗଡ଼ିବାକୁ ଲାଗିଲେ । ବ୍ରାହ୍ମଣୀ କହିଲା, ମୁଁ ବାପଘରୁ ଦୁଇଟା ଶଗଡ଼ ଓ ଦୁଇହଳ ବଳଦ ମାଗି ଆଣିବି । ବ୍ରାହ୍ମଣ କହିଲା, ମୁଁ ତାହାହେଲେ ଗାଁରୁ ଭାତପିଠା ମାଗି ଆଣିବି । ଏ କଥା ସିନା ହେଲା, ମାତ୍ର ଜଣେ ଲୋକ କେଉଁଠୁ ପାଇବା ? ବ୍ରାହ୍ମଣୀ କହିଲା, ତୁମେ ପୁଅଝିଅ ଦୁହିଙ୍କୁ ପୋଷ । ମୁଁ କାଲି ଅସୁର ପାଖକୁ ଯିବି । ତୁମେଥିଲେ ଧନ ରୋଜଗାର କରି ଆଉଥରେ ଘରସଂସାର କରି ପାରିବ । ଏ କଥାଶୁଣି ବ୍ରାହ୍ମଣ କହିଲା, ନା ନା ସେ କଥା ହେବନାହିଁ । ମା ମରିଗଲେ ପିଲା ଦୁଇଟି ସିନା ଅନାଥ ହେବେ । ସେମାନଙ୍କ

ବିକଳ ଦେଖି ମୁଁ ଦେହଧରି ରହିପାରିବି ନାହିଁ । ଏଣୁ ମୁଁ କାଲି ଅସୁରପାଖକୁ ଯାଉଛି । ତୁମେ ପୁଅଝିଅଙ୍କ ଯତ୍ନ ନିଅ । ବ୍ରାହ୍ମଣୀ କହିଲା, ପଣ୍ଡାଏ ! ଏକି କଥା କହୁଛ ? ତୁମେ ମଲେ ମୁଁ ବିଧବା ହେବି ବିଧବା ନାରୀର ବଞ୍ଚିବା ମରିବା ସମାନ । କାରଣ ସ୍ୱାମୀବିନା ସ୍ତ୍ରୀ ଦୁଃଖିନୀ ଓ ନିଆଶ୍ରୀ ହୁଏ । ବାପମାଙ୍କ କଥାବାର୍ତ୍ତା ଶୁଣି ପୁଅ କହିଲା, ମୋତେ ବରଂ କାଲି ଅସୁର ଖାଉ । ପୁଅ ଥାଉ ଥାଉ ବାପ ମାଙ୍କର ଚିନ୍ତା କରିବା ଉଚିତନୁହେଁ । ଦଶବର୍ଷ ପୁଅର ଏ କଥାଶୁଣି ବାପ ମା ତାକୁ କୋଳରେ ଧରି କାନ୍ଦିବାକୁ ଲାଗିଲେ । ବାପ ମାଙ୍କ ଏ ଅବସ୍ଥାଦେଖି ଝିଅ କହିଲା, ତୁମେ କେହି କାନ୍ଦନାହିଁ । ତୁମେ ତ ଜାଣିଛ, ଝିଅଜନମ ପରଘରକୁ । ଏଣୁ କାଲି ମୋତେ ଅସୁରକୁ ଦେଇ ତୁମର ପାଳି ସୁଝାଅ । ବ୍ରାହ୍ମଣ କହିଲା, ମା, ତୁ ତ ଅତି ଛୋଟପିଲା । ତୋତେ ଖାଇ ବକାସୁର ଆଦୌ ସନ୍ତୁଷ୍ଟ ହେବ ନାହିଁ ।

କୁନ୍ତୀଦେବୀ ତ ଜଳାବାଟେ ଶୁଣୁଥିଲେ । ବ୍ରାହ୍ମଣଘରେ କାନ୍ଦିବାକାଳି ଶୁଣି ସେ କେତେ ସମୟ ବା ଧୈର୍ଯ୍ୟଧରନ୍ତେ । ସେ ବ୍ରାହ୍ମଣଘରକୁ ପଶିଆସିଲେ, ପଚାରିଲେ, ପଣ୍ଡାଏ ! ବକାସୁରର ପାଳିକଥା କଣ କି ?

## ବକାସୁରର ପାଳି

ପଣ୍ଡାକହିଲା, ମା, ଏ ଦୁଃଖ କାହାଣୀ କ'ଣ କହିବି ? ହିରଣ୍ୟ କବଚ ବୋଲି ଜଣେ ଭାରି ଶକ୍ତିଶାଳୀ ଅସୁର ଥିଲା । ତାର ପୁଅ ହେଉଛି ନିବାତକବଚ । ଏହାର ଚାରିପୁଅ ଓ ଗୋଟିଏ ଝିଅ । ଚାରିପୁଅଙ୍କର

ନାମ ହେଲା,—କୁମ୍ଭୀର, କନ୍ଧର, ହିଡ଼ମ୍ବକ ଓ ବକ । ଝିଅର ନାମ ହିଡ଼ମ୍ବକୀ । କୁମ୍ଭୀର ସୁରନଦୀରେ, କନ୍ଧର ମଧୁବନରେ, ହିଡ଼ମ୍ବକ ବଣରେ ହିଡ଼ମ୍ବକ ଅସୁରଥାଏ । ଏହି ଏକଚକ୍ର ଗ୍ରାମପାଖରେ ଥିବା ବଣରେ ବକାସୁର ରହେ । ପ୍ରତିଦିନ ବକାସୁରର ଖାଦ୍ୟପାଇଁ ଏକ ଶଗଡ଼ ଭାତ, ଏକ ଶଗଡ଼ ପିଠା, ଦୁଇହଳ ବଳଦ ଓ ଗୋଟିଏ ମଣିଷ ଦରକାର । ଗାଁର ସମସ୍ତଲୋକ ବକାସୁର ସଙ୍ଗେ ଚୁକ୍ତିକରିଛନ୍ତି । ପାଳି ଅନୁସାରେ ପ୍ରତ୍ୟେକଘର ତାର ଏହି ଖାଦ୍ୟସବୁ ଯୋଗାଇବେ । କାଲି ଆମ ଘରେ ପାଳିପଡ଼ିଛି । ଆମେ ଆଉସବୁ ଜିନିଷ ଯୋଗାଡ଼ କରି ପାରିବୁଁ । ମାତ୍ର ଲୋକଟିଏ କେଉଁଠୁ ପାଇବୁ ? ସେଥିପାଇଁ ଆମର ଭାଳେଣି ପଡ଼ିଛି ।

## କୁନ୍ତୀଙ୍କର ମହତ୍ ପଣିଆ

ଏ କଥାଶୁଣି କୁନ୍ତୀ କହିଲେ, ତୁମେ କିଛି ଚିନ୍ତା କରନାହିଁ । ଆମେ ଯେତେବେଳେ ତୁମଘରେ ରହିଲୁଁ, ତୁମର ପାପପୁଣ୍ୟରେ ଭାଗୀହେବା କଥା । ତୁମେ ଅନ୍ୟ ଜିନିଷତକ ଯୋଗାଡ଼କର । ମୁଁ ମୋ ପୁଅକୁ ଅସୁର ପାଖକୁ ପଠାଇବି । ଏ କଥାଶୁଣି ବ୍ରାହ୍ମଣ ଦୁଇଁକୁ ଛୁଇଁ କାନରେ ହାତଦେଲା । ସେ କହିଲା, ତୁମେ ମୋ ଘରେ ଅତିଥି, ମୁଁ ପାପିଷ୍ଠ, ତୁମ ପୁଅକୁ ଅସୁରପାଖକୁ ପଠାଇବି ? ଏ କଥା ହୋଇପାରିବ ନାହିଁ । ପୁଅ, ଝିଅ ଓ ସ୍ତ୍ରୀ—ଏ ତିନିଙ୍କୁ ଘରେରଖି ବରଂ ମୁଁ ଅସୁର ପାଖକୁ ଯିବି । ଏ କଥାଶୁଣି କୁନ୍ତୀଦେବୀ କହିଲେ, ମୋ କହିବା କଥା ସତ୍ୟ । ମୋର ଗୋଟିଏ ଅଲସୁଆ ପୁଅ ଅଛି, ସେ ଭିକମାଗି ଯାଏନାହିଁ । ପୁଣି ଯାହା ଭିକ ମିଳେ ସେଥିରୁ ସେ ଅଧେ ଖାଏ । ତେବେମଧ୍ୟ ସେ ଅସନ୍ତୁଷ୍ଟ । ଜଗତରେ କାହାରି ସଙ୍ଗେ

କଥାବାର୍ତ୍ତା କରୁନାହିଁ । ତାର ମରଣ ମୁଁ ଚାହୁଁଛି । ଆମେ ନିଜେ ତାକୁ ମାରିବା ଅପେକ୍ଷା ସେ ବରଂ ଏହି ଉପାୟରେ ମରୁ । ବ୍ରାହ୍ମଣ କିନ୍ତୁ କୁନ୍ତୀଦେବୀଙ୍କ କଥାରେ ରାଜି ହେଉ ନ ଥାଏ । ଅନେକ ବୁଝାଇଲା ପରେ ବ୍ରାହ୍ମଣ କୁନ୍ତୀଙ୍କ କଥାରେ ରାଜିହେଲା ।

## ପାଞ୍ଚଭାଇ ଓ କୁନ୍ତୀଙ୍କ ମଧ୍ୟରେ ବିଚାର

ଏହାପରେ କୁନ୍ତୀଦେବୀ ଭୀମପାଖକୁ ଆସିଲେ । ମା'ଙ୍କୁ ଭୀମ ଯେମିତି ଦେଖିଛି ପଚାରିଲା, ମା' ଭାତପିଠା କଥା କ'ଣ ପଡ଼ିଥିଲା କି ? ମା' କହିଲେ, କାଲି ବକାସୁରର ପାଳି । ତୁ ଦୁଇ ଶଗଡ଼ ଭାତ ପିଠା ନେଇ ତାକୁ ଦେଇ ଆସିବୁ । ସଂଧ୍ୟା ହେବାରୁ ଅନ୍ୟ ଚାରି ପୁଅ ଭିକ୍ଷା କରି ଫେରିଲେ । ମା' ବ୍ରାହ୍ମଣର ବିପତ୍ତି କଥା ସେମାନଙ୍କୁ କହିଲେ । ବ୍ରାହ୍ମଣର ବିପଦ ଦେଖି ଭୀମକୁ ପଠାଇବାକୁ ସତ୍ୟ କରିଥିବା କଥା ମଧ୍ୟ କହିଲେ ।

ମା'ଙ୍କର ଏପରି ସତ୍ୟ କରିଥିବା କଥା ଶୁଣି ଯୁଧିଷ୍ଠିର ଦୁଃଖିତ ହୋଇ କହିଲେ, ମା' ତୋର ଆମେ ପାଞ୍ଚ ପୁଅ । ଯେଉଁ ଲୋକର ଗୋଟିଏ ପୁଅ, ସେ ମଧ୍ୟ ଏପରି କଥା କରିବ ନାହିଁ । ତେବେ ଭୀମ ଆମକୁ ଅନେକ ବିପଦ ଆପଦରୁ ରକ୍ଷା କରିଛି । ସେ କୁମ୍ଭୀର, କିମ୍ମିର ଓ ହିଡ଼ିମ୍ବକ ଅସୁରକୁ ମାରିଛି । ଏଣୁ ଭୀମ ବକାସୁର ପାଖକୁ ନ ଯାଇ ଘରେ ରହୁ । ଅର୍ଜ୍ଜୁନ ଜଣେ ବଡ଼ ଯୋଦ୍ଧା । ସେ ମଧ୍ୟ ଯିବା ଉଚିତ ନୁହେଁ । ନକୁଳ ଓ ସହଦେବ ତ ସାବତମା'ଙ୍କ ପୁଅ । ତେଣୁ ସେମାନଙ୍କୁ ମଧ୍ୟ ପଠାଇବା ଠିକ୍ ହେବ ନାହିଁ । ଏଣୁ ତୁମେ ମୋତେ ବକାସୁର ପାଖକୁ ପଠାଅ ।

ମା' ଏ କଥା ଶୁଣି କହିଲେ, ଯୁଧିଷ୍ଠିର ଶୁଣ୍, ଭୀମର ବଳବୀର୍ଯ୍ୟ କଥା ମୋତେ ଜଣା । ସେ ଯେତେବେଳେ ଜନ୍ମ ହେଲା, ମୁଁ ତାକୁ କୋଳରେ ଧରି ବସିଥିଲି । ତାପରେ ତାକୁ ତଳେ ଶୁଆଇ ଅନ୍ୟଆଡ଼େ ଟିକିଏ ଚାଲିଗଲି । ଏତିକିବେଳେ ଗୋଟିଏ ମହାବଳି ବାଘ ତାକୁ ଖାଇବ ବୋଲି ଭୀଷଣ ଗର୍ଜନ କରି ଦୌଡ଼ି ଆସିଲା । ଭୀମ ତ ହାତ ଗୋଡ଼ ହଲାଇ କାନ୍ଦୁଥିଲା । ଭୀମର ପାଦ ଆଘାତରେ ବାଘର ମୂର୍ଦ୍ଧନା ଫାଟିଗଲା । ବାଘ ସେଇଠି ପଡ଼ି ମଲା । ଆଉଥରେ ଏହାର ଡାହାଣ ପାଦର କାଣି ଆଙ୍ଗୁଠି ବାଜି ଶତଶୃଙ୍ଗ ପର୍ବତର ଶୃଙ୍ଗ ଭାଙ୍ଗି ପଡ଼ିଲା । ଏଣୁ ଶତଶୃଙ୍ଗ ପର୍ବତ ରାଗିଯାଇ ଭୀମକୁ ଅଭିଶାପ ଦେଇ କହିଲା, ତୁ ମୋତେ ଗୋଇଠା ମାରିଲୁ, ଯା, ମୋ ଅଭିଶାପରେ ଯୁଦ୍ଧରେ ତୁ ହାରିବୁ । ଏ କଥା ଶୁଣି ମୁଁ ଆସି କହିଲି, ହେ ପର୍ବତରାଜ ! ଏହି ବାଳୁତ ପୁଅ ଉପରେ ଏତେ ରାଗ କଲ ? ଶତଶୃଙ୍ଗ ପର୍ବତ କହିଲା, ମା' ! ତୁମେ କୋପ କରନାହିଁ । ପ୍ରଥମ ଯୁଦ୍ଧରେ ଭୀମ ହାରିବ ସତ; ମାତ୍ର ଦ୍ୱିତୀୟ ଯୁଦ୍ଧରେ ମୁଁ ଏହା ଦେହରେ ବସିବ । ସେ ଏକଶହ ସିଂହର ବଳପାଇ ଅସଲ ରୂପ ଧରିବ । ସେତେବେଳେ ତାକୁ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର କେହିହେଲେ ଯୁଦ୍ଧରେ ଜିଣି ପାରିବେ ନାହିଁ । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ, ଏହି ତିନିପୁରର ଲୋକେ ତାକୁ ଭୟ କରିବେ । ଏ କଥା ଜାଣିଥିବାରୁ ମୁଁ ଭୀମକୁ ଅସୁର ପାଖକୁ ପଠାଇବାପାଇଁ ଠିକ୍ କରିଛି ।

ତାପରେ ଯୁଧିଷ୍ଠିର ସହଦେବକୁ ପଚାରିଲେ, ଭୀମ ବକାସୁରକୁ ମାରି ପାରିବ ତ ? ସହଦେବ ତ ଆଗତ-ଭବିଷ୍ୟ

କଥା ଜାଣିପାରେ । ସେ କହିଲା, ବକାସୁର ଓ ତାର ଅନ୍ୟ ଡନଭାଇଙ୍କ ଅତ୍ୟାଚାରରେ ଜନପୁରର ଲୋକେ ଅଥୟ ହେଲେ । ଏହି ଅସୁରମାନଙ୍କୁ ମାରି ସଂସାରରୁ ଅନ୍ୟାୟ ଅତ୍ୟାଚାର ଦୂର-କରିବାପାଇଁ ଆମର ଜନ୍ମ । ଏହା ଆଗରୁ ଭୀମ ବକାସୁରର ଅନ୍ୟ ଡନଭାଇଙ୍କୁ ମାରି ସାରିଛନ୍ତି । ଏବେ ବକାସୁରକୁ ମାରିବାର ପାଳି ପଡ଼ିଛି । ଏ କଥା ଶୁଣି ଭୀମ ବକାସୁରକୁ ଖାଦ୍ୟ ନେଇ ଦେବା କଥାରେ ସମସ୍ତେ ରାଜି ହେଲେ ।

## ଘିମର ପିଠାଖିଆ

ଏଣେ କୁନ୍ତୀଙ୍କ କଥାରେ ଖୁସିହୋଇ ବ୍ରାହ୍ମଣୀ ବାପଘରକୁ ଦୌଡ଼ିଲା । ନିଜର ଦୁଃଖ କାହାଣୀ ବାପ ମା'ଙ୍କୁ କହିଲା । ବାପା ଦୁଇହଳ ବଳଦ ଯୋଚି ଦୁଇ ଶଗଡ଼ ଘିଅପିଠା ଝିଅଘରକୁ ପଠାଇ ଦେଲେ । ବ୍ରାହ୍ମଣ ଦୁଆରେ ଘିଅପିଠାର ଶଗଡ଼ ଦେଖି କୁନ୍ତୀଦେବୀ ଭୀମକୁ କହିଲେ, ଯା ଏତକ ବକାସୁରକୁ ଦେଇ ଆସିବୁ ।

ଭୀମସେନ ତ ଟାଙ୍କ ବସିଥିଲା । ମା'ଙ୍କ କଥା ଶୁଣିଲା ମାତ୍ରେ ସଙ୍ଗେ ସଙ୍ଗେ ଶଗଡ଼ ଅଡ଼େଇ ଚାଲିଲା । କୁନ୍ତୀଦେବୀ ତା ପଛେ ପଛେ ଗାଁ ମୁଣ୍ଡଯାଏ ବଳେଇ ଦେବାକୁ ଗଲେ । ଗାଁର ସ୍ତ୍ରୀଲୋକମାନେ ଏ କଥା ଦେଖି କୁନ୍ତୀଦେବୀଙ୍କୁ ପଚାରିଲେ, ଏପରି ସୁନ୍ଦରିଆ ପୁଅକୁ ଜାଣୁ ଜାଣୁ କିଏ ଅସୁର ମୁହଁକୁ ପଠାନ୍ତି ? ଯଦି ତୁମେ ଏହାକୁ ପୋଷି ପାରୁନ, ତେବେ ଆମକୁ

ଦେଇ ଦେଉନ, ଆମେ ପୋଷିବୁ । କୁନ୍ତୀଦେବୀ କହିଲେ, ଭଉଣୀମାନେ ଦେଖ, ଏହି ବ୍ରାହ୍ମଣ ଘରର ଅଧିକରେ ମୁଁ ପିଲାପିଲି ନେଇ ରହିଛି । ଏଣୁ ବ୍ରାହ୍ମଣର ପାପପୁଣ୍ୟରେ ମୁଁ ମଧ୍ୟ ଭାଗୀ । ମୁଁ ଯଦି ଏତକ ନ କରେ ତେବେ ଧର୍ମ କଣ ମୋତେ ସହିବ ? ସ୍ତ୍ରୀଲୋକମାନେ କହିଲେ, ବୋଧହୁଏ, ଏ ତୁମର ପୁଅ ନୁହେଁ ଶତ୍ରୁ । ମାତ୍ର ପଣ୍ଡିତଲୋକେ କହିଲେ, ଏ ଜଣେ ମହତ୍ ଲୋକ । ପର ଦୁଃଖରେ କାତର ହୋଇ ସେ ନିଜ ପୁଅକୁ ଅସୁର ପାଖକୁ ପଠାଉଛି ।

ଗାଁ ମୁଣ୍ଡରୁ ମା' ଫେରି ଆସିଲେ । ଭୀମ ଶଗଡ଼ ଅଡ଼ାଇ ଆଗକୁ ଗ୍ଲଲା । ଘୋର ଜଙ୍ଗଲରେ ଅନେକ ବାଟ ଗଲାପରେ ଗୋଟିଏ ନଦୀ ପଡ଼ିଲା । ନଦୀ କୂଳରେ ଗାଡ଼ିକୁ ରଖିଲା । ଭୀମ ନଦୀରେ ମନଖୁସିରେ ଗାଧୋଇ ପଡ଼ିଲା । ସେତେବେଳକୁ ସେ ଭୋକରେ ଅଥୟ ହେଲାଣି । ପୁଣି ପାଖରେ ବଢ଼ିଆ ଖାଦ୍ୟ ଦେଖି ଭୀମ କ ଆଉ ସମ୍ଭାଳା ପଡ଼େ । ସେ ଡାହାଣ ହାତରେ ଭାତଗୁଣ୍ଡାଏ ପୂରାଇଲା ବେଳେ ବାଆଁ ହାତରେ ପାଞ୍ଚସାତ ପିଠା ଧରି ପାଟିରେ ପକାଇଲା । ତାକୁ ତ ଭୀଷଣ ଭୋକ ହେଉଥିଲା । ତେଣୁ ସେ ଶୀଘ୍ର ଶୀଘ୍ର ଖାଇବାକୁ ଲାଗିଲା ।

## ଭୀମ ଓ ବକାସୁର ମଧ୍ୟରେ ଯୁଦ୍ଧ

ଦିନ ଦ୍ୱିପହର ବେଳକୁ ବକାସୁର ଦୁଇ ହାତରେ ଦୁଇଟି ଶୂଳ ଧରି ଆସି ପହଞ୍ଚିଲା । ଦେଖିଲା ବେଳକୁ ତା'ପାଇଁ ଆଣିଥିବା ଖାଦ୍ୟ ଭୀମ ଖାଇବାରେ ବ୍ୟସ୍ତ । ସେ ପୁଣି ସ୍ୱଚ୍ଛପରି ଦେଖାଯାଉଛି ।

ଏ କଥା ଦେଖି ବକାସୁର ଭୀଷଣ ରାଗି ଗଲା । ସେ କହିଲା, ରେ ରେ ମୂର୍ଖ, ମୋର ମଣୋହିକୁ ତୁ ଅଇଁଠା କଲୁ । ଭୀମ ତ ଖାଇବାରେ ବ୍ୟସ୍ତ । ସେ ଅସୁର କଥା ବା କାହିଁକି ଶୁଣନ୍ତା ? ଭୀମସେନ ନ ଶୁଣିବାରୁ ଅସୁର ଭୀଷଣ ରଡ଼ି କଲା । ତା ରଡ଼ିରେ ଚକ୍ରପୁର କମ୍ପି ଉଠିଲା । ଡାକ ଡାକ ଅସୁର ଥକି ପଡ଼ିଲା । ଭୀମର କିନ୍ତୁ ସେଥିକି ଖାତିର ନାହିଁ । ସେ ଅସୁରର ରଡ଼ିକୁ କର୍ଣ୍ଣପାତ କରୁ ନ ଥାଏ । ତେଣୁ ଅସୁର ରାଗିଯାଇ ଶୂଳ ଦୁଇଟାକୁ ବୁଲାଇ ବୁଲାଇ ଭୀମ ଉପରେ ପିଙ୍ଗିଲା । ଭୀମର ବାମ ଅଙ୍ଗରେ ପଡ଼ି ଏଡ଼େ ବଡ଼ ଶୂଳ ଦୁଇଟି ଗୁଣ୍ଡା ହୋଇଗଲା । ଭୀମକୁ ତ ଖାଇବା ଲୋଭ ଲାଗିଛି । ସେ ଶୂଳ ମାଡ଼କୁ ଖାତିର କରୁଛି କେଉଁଠି ? ଅସୁର ରାଗରେ ଦୁଇଟା ଗଛ ଉପାଡ଼ି ଆଣି ଭୀମ ଉପରେ ପିଙ୍ଗିଲା । କିନ୍ତୁ ଗଛ ଦୁଇଟା ମଧ୍ୟ ଭୀମ ଦେହରେ ବାଜି ଖଣ୍ଡ ଖଣ୍ଡ ହୋଇଗଲା । ଖାଇବା ଭୋଳରେ ଭୀମକୁ ଗଛ ମାଡ଼ ମଧ୍ୟ ଜଣାପଡ଼ିଲା ନାହିଁ । ତାପରେ ଅସୁର ବଡ଼ ବଡ଼ ପଥର ଉଠାଇ ଭୀମ ଉପରେ କଚାଡ଼ିଲା । ତାହାମଧ୍ୟ ଭୀମ ମୁଣ୍ଡରେ ବାଜି ଚୂନା ହୋଇଗଲା ।

ଅସୁର ଏ ଘଟଣା ଦେଖି ଟିକିଏ ଶଙ୍କିଗଲା । ଭୀମ କିନ୍ତୁ ଖାଇବା ଲୋଭରେ ଏହାକୁ ଖାତିର କଲା ନାହିଁ । ରାକ୍ଷସ ରାଗରେ କମ୍ପୁଥାଏ । ଭୀମ ଖାଇସାରି ସନ୍ତୁଷ୍ଟ ହେଲାପରେ ଲେଉଟି ରାକ୍ଷସକୁ ଚାହିଁଲା । ସେ କହିଲା, ରେ ମୂର୍ଖ ଦାନବ ତୋର କଣ ବୁଦ୍ଧି ବିବେକ ନାହିଁ । ତୁ କଣ ଜାଣି ନାହୁଁ, ଖାଇବାବେଳେ ଶତ୍ରୁକୁ ମଧ୍ୟ ମାରିବା ଉଚିତ ନୁହେଁ । ରାକ୍ଷସ

କହିଲା, ତୁ କେଉଁ ବ୍ରାହ୍ମଣରେ, ମୋର ଖାଦ୍ୟକୁ ଅଇଁଣା କଲୁ । ଭୀମ କହିଲା, ରେ ପାମର, ତୋର ଜୀବନକାଳ ଶେଷ ହେଲା, ତୁ ତୋର ଇଷ୍ଟଦେବୀଙ୍କୁ ସ୍ମରଣ କର ।

## ବକାସୁର ବଧ

ଏହିପରି ଉଚ୍ଚବାଚ ହେଉ ହେଉ ଦୁଇଜଣଯାକ ଧରାଧରି ମୁଥ ମରାମରି ହେଲେ । ସେମାନେ ଧରାପରା ହୋଇ ଭୂଇଁରେ ଗଡ଼ାଗଡ଼ି ହେଲେ । ଏହିପରି ଉଭୟଙ୍କ ମଧ୍ୟରେ ଭୀଷଣ ଲଢ଼େଇ ଚାଲିଲା । ଅସୁର ପ୍ରଥମେ ଭୀମକୁ ତଳେ ପକାଇ ତା ଛାତି ଉପରେ ମାଡ଼ି ବସି କହିଲା, ରେ ପାପିଷ୍ଠ ! ତୁ ଆଜି ମୋର ଖାଦ୍ୟ ନଷ୍ଟ କରିଛୁ, ମୁଁ ତୋତେ ଖାଇବି । ଭୀମ ତ ଯୁଦ୍ଧରେ ଆଗ ହାରେ । ତା ପରେ ସୁବିଧା ଦେଖି ଭୀମ ଅସୁରକୁ ଓଲଟାଇ ଦେଇ ତା ଛାତି ଉପରେ ମାଡ଼ି ବସିଲା । ଭୀମ ଭୀଷଣ ରୂପ ଧରି ସିଂହରଡ଼ି କଲା । ଅସୁରର ତଣ୍ଟି ଓ କପାଳ ଉପରେ ବଜ୍ରମୁଥମାନ ମାରିଲା । ଅସୁରର ନାକ ଓ ପାଟିରୁ ରକ୍ତ ବାହାରିଲା ।

ଏହାପରେ ଅସୁର ଭୀମକୁ ଧର୍ମଯୁଦ୍ଧ କରିବାକୁ ଡାକରା ଦେଲା । ଭୀମ କହିଲା, ଏବେ ତୁ ମୋ କବଳରେ ପଡ଼ି ଧର୍ମଯୁଦ୍ଧ କଥା କହୁଛୁ । କାହିଁ ଆଗରୁ ତ ଏ କଥା କହୁ ନ ଥିଲୁ ? ଏ ଭିତରେ ମୁଁ କୁମ୍ଭୀର, କିନ୍ନର, ହିଡ଼ିମ୍ବକ ଆଦି ତୋର ଅନ୍ୟ ଭାଇଭାଇଙ୍କୁ ମାରି ସାରିଛି । ତୋତେ ମାରିଲେ ଲୋକଙ୍କ କଣ୍ଟା ଯିବ । ଏହା କହି ଭୀମ ଅସୁରର ତଣ୍ଟି ରେ ମାଡ଼ିବସି ତାକୁ ମାରିଦେଲା ।

# ପାଣ୍ଡବମାନେ ଏକଚକ୍ର ଗ୍ରାମ ଛାଡ଼ିଲେ

ଅସୁରକୁ ମାରି ଭୀମ ତାର ଶବକୁ ଆଣି ଗ୍ରାମ ପାଖରେ ପକାଇ ଦେଲା । ତା ପରେ ରାତି ତିନି ପହରର ବେଳକୁ ସେ ଯାଇ ଘରେ ପହଞ୍ଚିଲା । ଘରେ ସମସ୍ତେ ଭୀମକୁ ଚାହିଁ ବସିଥିଲେ । ସକାଳ ହେଲେ ସେମାନଙ୍କ ଅଜ୍ଞାତବାସ କଥା ଜଣା ପଡ଼ିବ । ତେଣୁ ସେମାନେ ରାତାରାତି ସେ ଗାଁ ଛାଡ଼ି ପଳାଇଲେ । ସକାଳହେଲା ବେଳକୁ ସେମାନେ ଏକଚକ୍ର ଗାଁଠାରୁ ଅନେକ ଦୂର ଚାଲିଯାଇଥିଲେ ।

ସକାଳ ହେବା ମାତ୍ରେ ଅସୁର ମରିବା କଥା ଚାରିଆଡ଼େ ପ୍ରଚାର ହୋଇଗଲା । ଗାଁ ଲୋକେ ଆନନ୍ଦରେ ଭୋଳ । ବେଦଶ୍ରବା ଘରେ ରହୁଥିବା ବ୍ରାହ୍ମଣମାନଙ୍କୁ ଚାରିଆଡ଼େ ଖୋଜିଲେ । ମାତ୍ର ସେମାନଙ୍କ ପତ୍ତା ମିଳିଲା ନାହିଁ । ବେଦଶ୍ରବା ବ୍ରାହ୍ମଣକୁ ସମସ୍ତେ ଅନେକ ପ୍ରଶଂସା କଲେ । ସମସ୍ତେ ମିଳି ସେହି ଭିକାରି ବ୍ରାହ୍ମଣକୁ ଏକଚକ୍ର ଗ୍ରାମର ରାଜା କଲେ । ବ୍ରାହ୍ମଣୀ ମହତ୍ ଆଶ୍ରା କରିଥିବାରୁ ରାଣୀ ହେଲା । ଏହାପରେ ଏକଚକ୍ର ଗ୍ରାମର ଲୋକେ ମହାଆନନ୍ଦରେ କାଳ କାଟିଲେ ।



# ଧର୍ମର ଜୟ ହେଉ

ପାଣ୍ଡବ ଓ କୌରବମାନଙ୍କ ମଧ୍ୟରେ ସବୁବେଳେ ଅମେଳ ଲାଗି ରହୁଥାଏ । ଯୁଧିଷ୍ଠିର ଓ ତାଙ୍କ ଭାଇମାନେ ଧାର୍ମିକ ଓ ସରଳ । ମାତ୍ର ଦୁର୍ଯ୍ୟୋଧନ ଓ ତା ଭାଇମାନେ ଅତି ଦୁଷ୍ଟ ଓ କପଟିଆ । ସେମାନେ ସବୁବେଳେ ପାଣ୍ଡବମାନଙ୍କର ଅମଙ୍ଗଳ ଚିନ୍ତାରେ ଥାଆନ୍ତି । ରାଜ୍ୟରୁ ପାଣ୍ଡବମାନଙ୍କୁ ତଡ଼ିଦେବା ପାଇଁ ସେମାନେ ନାନାପ୍ରକାର ଉପାୟ କରୁଥାନ୍ତି । ତାଙ୍କ ମାମୁଁ ଶକୁନି ଏଥିରେ ସେମାନଙ୍କୁ ସାହାଯ୍ୟ କରୁଥାନ୍ତି ।

## ପଶାଖେଳ

ଯୁଧିଷ୍ଠିରଙ୍କ ସଙ୍ଗେ ପଶା ଖେଳର ଏକ ଆୟୋଜନ କରାଗଲା । ସେତେବେଳେ ପଶା ଖେଳ ରଜାପୁଅମାନଙ୍କର ଅତିପ୍ରିୟ ଓ ସମ୍ମାନଜନକ ଖେଳ ଥିଲା । ଧୃତରାଷ୍ଟ୍ରଙ୍କର ଇଚ୍ଛା ନ ଥିଲେ ମଧ୍ୟ ଯୁଧିଷ୍ଠିରଙ୍କୁ ପଶା ଖେଳିବାକୁ ଡକାଇଲେ । ଏଥିରେ କଥା ହେଲା ଯେ ଦୁର୍ଯ୍ୟୋଧନଙ୍କ ପକ୍ଷରୁ ତା ମାମୁଁ ଶକୁନି ପଶା ଖେଳିବେ । ଯେଉଁ ପକ୍ଷ ଖେଳରେ ହାରିଯିବ ସେ ବାରବର୍ଷ ବନବାସ କରିବ ଓ ଏକବର୍ଷ ଲୁଚିକରି ରହିବ । ଏକବର୍ଷ ଅଜ୍ଞାତ ବାସବେଳେ ଚିହ୍ନା ପଡ଼ିଲେ ପୁଣି ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତ ବାସ କରିବ । ଯୁଧିଷ୍ଠିର ଓ ଶକୁନି ମଧ୍ୟରେ ପଶା ଖେଳ

ଦୁର୍ଯ୍ୟୋଧନ ଭିକ୍ଷା ମାଗିବା ଅବସ୍ଥାରେ ଠିଆ ହୋଇଥିବା ଓ ଗାଈଗୋଠ ଆଣ ଜାଳ କରୁଥିବା ଦୃଶ୍ୟ

ଆରମ୍ଭ ହେଲା । ମାତ୍ର ଦୁଃଖର କଥା, ଯୁଧିଷ୍ଠିର ଥରକୁ ଥର ଖେଳରେ ହାରିଲେ । ସେ ଗୋଟିକ ପରେ ଗୋଟିଏ କରି ନିଜ ରାଜ୍ୟ, ସ୍ତ୍ରୀ ଓ ଭାଇମାନଙ୍କୁ ବାଜିରେ ହରାଇଲେ । ଶେଷରେ ସେ ନିଜକୁ ବାଜି ରଖିଲେ । ମାତ୍ର ସେଥିରେ ମଧ୍ୟ ହାରିଗଲେ ।

## ପାଣ୍ଡବମାନଙ୍କ ବନବାସ

ପଶା ଖେଳର ପଣ ଅନୁସାରେ ଯୁଧିଷ୍ଠିର ତାଙ୍କ ଚାରିଭାଇ ଓ ସ୍ତ୍ରୀ ଦ୍ରୌପଦୀଙ୍କୁ ସଙ୍ଗରେ ନେଇ ବନବାସକୁ ଗଲେ । ବନବାସ କାଳରେ ସେମାନେ ବହୁତ ଦୁଃଖକଷ୍ଟ ଭୋଗ କଲେ । ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତ ବାସ ପରେ ସେମାନେ ହସ୍ତିନାକୁ ଫେରିଆସିଲେ । ଯୁଧିଷ୍ଠିର ପାଞ୍ଚଭାଇ ପାଇଁ ଅତକମରେ ପାଞ୍ଚଖଣ୍ଡି ଗାଁ ଦେବାକୁ ଦୁର୍ଯ୍ୟୋଧନକୁ କହିଲେ । ମାତ୍ର ଦୁର୍ଯ୍ୟୋଧନ କହିଲା, ବିନାଯୁଦ୍ଧରେ ସୂଚ୍ୟଗ୍ର ଭୂମି ମଧ୍ୟ ଦେବ ନାହିଁ । ଫଳରେ ପାଣ୍ଡବ ଓ କୌରବ ଉଭୟ ପକ୍ଷ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଧର୍ମକ୍ଷେତ୍ର କୁରୁକ୍ଷେତ୍ରଠାରେ ଯୁଦ୍ଧର ଆୟୋଜନ କରାଗଲା । ଯୁଦ୍ଧକୁ ଯିବା ପୂର୍ବରୁ ଉଭୟ ପକ୍ଷ ପିତାମାତା ଓ ଗୁରୁଜନଙ୍କ ଆଶୀର୍ବାଦ ଭିକ୍ଷା କରିବାକୁ ଗଲେ ।

## ଦୁର୍ଯ୍ୟୋଧନର ଆଶୀର୍ବାଦ ଭିକ୍ଷା

ଯୁଦ୍ଧର ଆୟୋଜନ କରିସାରି ଦୁର୍ଯ୍ୟୋଧନ ମା' ଗାନ୍ଧାରୀଙ୍କ ଆଶୀର୍ବାଦ ପାଇଁ ଗଲା । ମା'ଙ୍କ ପାଖରେ ପହଞ୍ଚି ସେ ଭକ୍ତି

ସହକାରେ ପ୍ରଣାମ କଲା । ତାପରେ ସେ କହିଲା, ମା', ମୋତେ ଆଶୀର୍ବାଦ କର ଯେପରି ମୁଁ ଶତ୍ରୁ ସୈନ୍ୟଙ୍କୁ ଜୟକରି ଫେରି ଆସେ । ତୁମେ ହେଉଛ ଶହେପୁଅର ମା' । ଏ ପୃଥିବୀରେ ତୁମେ ଜଣେ ଶ୍ରେଷ୍ଠ ନାରୀ । ତୁମ ଆଶୀର୍ବାଦ ଲାଭ କରି ଆମେ ତ୍ରିଭୁବନକୁ ମଧ୍ୟ ଜୟ କରିପାରିବୁଁ ।

## ଗାନ୍ଧାରୀଙ୍କ ଆଶୀର୍ବାଦ

ଗାନ୍ଧାରୀ ଦୁର୍ଯ୍ୟୋଧନର ଏ କଥା ଶୁଣି କହିଲେ, ରେ ପୁଅ, ତୁ ଯଦି ଯୁଦ୍ଧ କରିବାକୁ ଚାହୁଁଛୁ, ତେବେ ତୁ ଯୁଦ୍ଧ କର । ଏଥିରେ ମୁଁ ଆପତ୍ତି କରୁନାହିଁ । ମୁଁ ଆଶୀର୍ବାଦ କରୁଛି ଏ ପୃଥିବୀରେ ଧର୍ମର ଜୟ ହେଉ । ପୃଥିବୀରୁ ପାପରାଶି ଦୂର ହେଉ । ତୁମେ ଶହେ ତ କେବଳ ମୋର ପୁଅ ନୁହଁ, ବା ଜଣେ କେହି ମୋର ଅତିପ୍ରିୟ ନୁହଁ । ଯୁଧିଷ୍ଠିର, ଭୀମ, ଅର୍ଜୁନ କେହି ମୋର ପର ନୁହନ୍ତି । ଏହି ଧର୍ମଯୁଦ୍ଧରେ ସମସ୍ତେ ମୋର ସନ୍ତାନ । ମୁଁ ଶହେପୁଅକୁ ଜନ୍ମ ଦେଇ ସମସ୍ତ ମାତୃ ଜାତିର ଦୁଃଖ ବେଶ୍ ବୁଝିପାରୁଛି । ତୁ ବା ଅର୍ଜୁନ ମଲେ ମୁଁ ସମାନ ପରିମାଣରେ ଦୁଃଖୀ ହେବି । ଏଣୁ ତୁ ମନରେ ଭୟ ବା ଦୁଃଖ ନ କରି ଯୁଦ୍ଧ କର । ଯୁଦ୍ଧରେ ଧର୍ମର ନିଶ୍ଚୟ ଜୟ ହେବ ।

## ଦୁର୍ଯ୍ୟୋଧନର ଭାବନା

ମା'ଙ୍କର ଏ ପ୍ରକାର ଆଶୀର୍ବାଦ ପାଇ ଦୁର୍ଯ୍ୟୋଧନ କିଛି ଚିନ୍ତା କରି ପାରିଲା ନାହିଁ । ସେ ଭାବିଲା, ମା' ହୋଇ କିଏ

କ'ଣ ଏଡ଼େ ନିଷ୍ଠୁର ହୋଇପାରେ ? ଶହେ ପୁଅଙ୍କୁ ଯୁଦ୍ଧକୁ ପଠାଇ କେଉଁ ମା' କ'ଣ ନ କାନ୍ଦି ଶାନ୍ତରେ ରହିପାରେ ! ସେ ବୁଝିପାରିଲା ନାହିଁ ଏଇଟା ମା'ଙ୍କର ତା ପ୍ରତି ଅଭିଶାପ ନା ଆଶୀର୍ବାଦ ! ସେ ଆଶା କରିଥିଲା, ମା'ଙ୍କ ଆଶୀର୍ବାଦରେ ସେ ଯୁଦ୍ଧରେ ବିଜୟୀ ହେବ । ମାତ୍ର ତାର ସେ ଆଶା ଧୂଳିସାତ୍ ହୋଇଗଲା । ସେ ମନଦୁଃଖରେ ଫେରି ଆସିଲା ।

## କୁରୁ ପାଣ୍ଡବ ମଧ୍ୟରେ ଯୁଦ୍ଧ

ଏହାପରେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଭୀଷଣ ଲଢ଼େଇ ଲାଗିଲା । ଏହି ଯୁଦ୍ଧ ଅଠରଦିନ ଧରି ଚାଲିଲା । ଯୁଦ୍ଧରେ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ଆଦି ମହା ମହା ବୀର ଟଳି ପଡ଼ିଲେ । ଦୁଃଶାସନ ଆଦି ଦୁର୍ଯ୍ୟୋଧନର ଅନେକଶତ ଭାଇ ମଲେ । ତାପରେ ଭୀମ ଓ ଦୁର୍ଯ୍ୟୋଧନ ମଧ୍ୟରେ ଯୁଦ୍ଧ ହେଲା । ଶେଷରେ ଦୁର୍ଯ୍ୟୋଧନ ମଧ୍ୟ ମଲା । କୁରୁବଂଶ ଧ୍ୱଂସ ହେଲା । ଧର୍ମର ଜୟ ହେଲା ।



Printed at Aravali Printers New Delhi-20

ଏହି ପୁସ୍ତକଟି ନବସାକ୍ଷର ମାନଙ୍କ ପାଇଁ ପ୍ରକାଶିତ । ଯଦି ଆପଣ ନବସାକ୍ଷର ଅଟନ୍ତି, ତେବେ ତଳେ ଆମେ ଆପଣଙ୍କ ଠାରୁ ଚାହିଁଥିବା ସୂଚନା ଗୋଟିଏ ଅଲଗା କାଗଜରେ ଲେଖି ଆମ ପାଖକୁ ପଠାନ୍ତୁ । ଏହା ଫଳରେ ଆମକୁ ଆହୁରି ଭଲ ପୁସ୍ତକ ପ୍ରକାଶ କରିବାରେ ସହଯୋଗ ମିଳିବ ।

1· ଆପଣଙ୍କ ନାମ

2· ଆପଣଙ୍କ ବୟସ

3· ଆପଣଙ୍କ ମାତୃଭାଷା

4· ଆପଣ କି କାମ କରନ୍ତି

5· ଆପଣଙ୍କ ମାସିକ ଆୟ

6· ଆପଣଙ୍କ ଠିକଣା

7· ସାକ୍ଷରତା ପ୍ରବେଶିକାର କେତୋଟି ଭାଗ ଆପଣ ପଢ଼ିଛନ୍ତି ?

8· ସାକ୍ଷରତାକୁ ଆପଣ କେଉଁ କାମରେ ଲଗାନ୍ତି ?

9· ଆପଣ ଖବରକାଗଜ ପଢ଼ନ୍ତି କି-କେବେକେବେ, ଅବସର ସମୟରେ ନା ନିୟମିତ ଭାବେ ?

10· ଆପଣ ପୁସ୍ତକ ପଢ଼ନ୍ତି କି - କେବେକେବେ, ଅବସର ସମୟରେ ନା ନିୟମିତ ଭାବେ ?

11· ଆପଣ କେଉଁ ବିଷୟ ପଢ଼ିବାକୁ ଭଲ ପାଆନ୍ତି ?

12· ଏହ ପୁସ୍ତକଟି ଆପଣଙ୍କୁ କିପରି ଲାଗିଲା ?

13· ଆପଣ ପ୍ରତି ମାସରେ ପୁସ୍ତକ କିଣିବାଲାଗି କେତେ ଟଙ୍କା ଖର୍ଚ୍ଚ କରି ପାରିବେ ?

ସୂଚନା ତଳେ ଲେଖାଥିବା ଠିକଣାରେ ପଠାନ୍ତୁ :

**ସଂପାଦକୀୟ ବିଭାଗ**

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଏ-5, ଗ୍ରୀନ୍ ପାର୍କ

ନୂଆଦିଲ୍ଲୀ - 110 016

